

ଆଲେକ୍‌ଜାନ୍ଦର କୁପ୍ରିନ୍

# ଯୂଶ୍‌କା



"ତା' ସଂପର୍କରେ ଯଦି ମୋଠାରୁ ଶୁଣିବାକୁ ଚାହୁଁଛ, ତେବେ ମନ ଧ୍ୟାନ ଦେଇ ଶୁଣ । ସେ ଟେବୁଲ ଚାଦରଟା ସେଇମିତି ଥାଉ, ତାକୁ ସେମିତି ମୋଡ଼ା ମୋଡ଼ି କର ନା...।

"ତାକୁ ସମସ୍ତେ ଡାକୁଥିଲେ ୟୁଶ୍କା ବୋଲି । ଛୁଆ ବେଳେ ସେ ଦେଖିବାକୁ ଥିଲା ଗୋଟିଏ ଲେମଲେମିଆ କୁନି ପେଣ୍ଡୁ ଭଳି । ଆଖି ଦୁଇଟି ତା'ର ଥିଲା ଖୁବ୍ ସୁନ୍ଦର, ନାକଟି ଥିଲା ଫିକାଳିଆ ଆଉ ଅଙ୍କଲାଲ । ଲେମଲେମିଆ ଏହି କୁନି ପେଣ୍ଡୁଟିର ଦିନସବୁ କଟି ଯାଉଥିଲା ଝରକା ପାଖରେ ବସି, ଢୋଳେଇ ଢୋଳେଇ ଖରା ପୁଇଁବାରେ । ଭୋକ ଲାଗିଲେ, ଆଖି ଦୁଇଟିକୁ ବୁଜି ଥାଳିଆରୁ ସେ ଦୁଧ ପିଉଥିଲା ଏବଂ ସବୁବେଳେ ଘୁଡ଼ୁ ଘୁଡ଼ୁ ଶବ୍ଦ କରୁଥିଲା । ଝରକା କାଚ ଉପରେ ମାଛିଟାଏ ବସି ଗଲା କ୍ଷଣି, ସେ ଥାବାରେ ତାକୁ ମାରି ଦେଉଥିଲା, ଘର ମେଜିଆ ଉପରେ ଦୌଡ଼ା ଦୌଡ଼ି କରି ବେଳେବେଳେ ଅସନା କରି ଦେଉଥିଲା । କାଗଜ ଖଣ୍ଡେ କିମ୍ବା ସୂତାଖିଅଟାଏ ଆଗରେ ତା'ର ପଡ଼ିଗଲେ, ସାଙ୍ଗେ ସାଙ୍ଗେ ସେ ଖେଳିବାକୁ ଆରମ୍ଭ କରି ଦେଉଥିଲା । କିଛି ନ ପାଇଲେ, ନିଜ ଲାଙ୍ଗୁଡ଼ ସାଙ୍ଗରେ ବି ଖେଳୁଥିଲା ସେ । ଏହି

ଭଳି ଦିନସବୁ ତା'ର ଗଡ଼ି ଗ୍ଲଲିଥାଏ , କେବେ ସେ ନରମ ଲେମଲେମିଆ ରଙ୍ଗ ବେରଙ୍ଗର ଲୁନି ପେଣ୍ଡୁଟି ଏକ ବଡ଼ , ସୁନ୍ଦର ଆଉ ଗର୍ବୀ ବିଲେଇରେ ପରିଣତ ହୋଇ ଗଲା , ଆମେ ଜାଣି ପାରିଲୁ ନାହିଁ । ସତରେ , ସେ ଦେଖାଯାଉଥିଲା ଖୁବ୍ ସୁନ୍ଦର , ଯେ କୌଣସି ବିଲେଇପ୍ରିୟ ଲୋକ ତାକୁ ଦେଖିଲେ , ଈର୍ଷା ନକରି ରହି ପାରୁ ନଥିଲେ ।

"ଚୁମ୍ବକରେ କହିବାକୁ ଗଲେ , ୟୁଶ୍କା ଥିଲା ସବୁ ବିଲେଇଙ୍କ ମଧ୍ୟରେ ଶ୍ରେଷ୍ଠ । ଦେହର ରଙ୍ଗ ତା'ର ଲାଲମିଶା ବାଦାମୀ , ଉପରେ ଅଦା ଭଳି ଥୋପା ଥୋପା ଦାଗସବୁ । ମୁହଁଟି କି ଚମତ୍କାର ସାଦା , ଢଗା ଢଗା କଳା ନିଶ । ଦେହଟି ରେଶମ ଭଳି ସାଉଁଳିଆ । ପଛ ଗୋଡ଼ ଦିଇଟା ଟିକିଏ ମୋଟା ଆଉ ବାଳବାଳୁଆ । ଲାଙ୍ଗୁଡ଼ଟା ଯେମିତି ଗୋଟାଏ ଦୀପ ପୋଛା ବ୍ରୁଶ !..

"ପୁଣି ସେ କୁକୁରଟାକୁ ନେଇ କ'ଣ କରୁଛୁ , ନିକା ! ତୁ କ'ଣ ଭାବୁଛୁ , ତୋ ବବ୍ବିକ୍ର କାନ ଦିଇଟା ହେଉଛି ଗାଡ଼ିର ହ୍ୟାଣ୍ଡଲ ଭଳି । ତୋ କାନକୁ ଯଦି କିଏ ମୋଡ଼ି ଦିଏ , କ'ଣ ହେବ , ତୁ ଜାଣୁ ? ସେମିତି କର ନା । ସେମିତି କଲେ , ମୁଁ ଆଉ କିଛି କହିବି ନି...।

"ହଁ , ସେଇ ଭଳି ଥାଉ ସେ , ତୁ ଶୁଣ ଏଥର । ୟୁଶ୍କାର ସବୁଠାରୁ ବଡ଼ ବିଶେଷତ୍ୱ ହେଉଛି ତା'ର ଚରିତ୍ର । ଆମ ଜୀବନରେ ଆମେ ଅନେକ ପଶୁ ପକ୍ଷୀଙ୍କ ସଂସ୍ପର୍ଶରେ ଆସିଛେ । କିନ୍ତୁ , ତୁ କ'ଣ କେବେ ସେମାନଙ୍କ କଥା ଚିନ୍ତା କରିଛୁ ? ନା , ଆମେ ସେମାନଙ୍କ ସଂପର୍କରେ କିଛି ଜାଣେ ନା । ଧର , ଏହି ସବୁ କୁକୁରଙ୍କ କଥା । ଆମେ ତ ଅନେକ କୁକୁରଙ୍କୁ ଜାଣେ । ତୁ ଦେଖିବୁ , ସେମାନଙ୍କର ମିଜାଜ , ଆଗ୍ରହ , ବ୍ୟବହାର ପରସ୍ପରଠାରୁ ଅଲଗା ଅଲଗା । ବିଲେଇ , ଘୋଡ଼ା ତଥା ପକ୍ଷୀମାନଙ୍କ କ୍ଷେତ୍ରରେ ମଧ୍ୟ ସେଇଆ ।

"ଉଦାହରଣ ସ୍ୱରୂପ , ତୋ ନିଜ କଥା ଧର । ତୋ ଭଳିଆ ଗୋଟେ ଉଖୁରିଆ , ଚଗଲା ପିଲା କେବେ ତୁ ଦେଖିଛୁ ? ଆଖିରେ କାହିଁକି ସେ ଆଙ୍ଗୁଳି କି ଖୁଞ୍ଚୁଛୁ କହତ ? ଏମିତି କଲେ , କ'ଣ ଗୋଟିଏ ବତୀ ବଦଳରେ ଦୁଇଟି ବତୀ ଦେଖୁ , ନା କ'ଣ ? ବତୀଟା ଅଲଗା ହୋଇ ଯାଇ ପୁଣି ଏକାଠି ହୋଇ ଯାଏ , ନା ? ସେମିତି ଆଖିରେ ଆଙ୍ଗୁଳି ଖୁଞ୍ଚନ୍ତି ନାହିଁ , ଆଖି ଖରାପ ହୋଇ ଯିବ...

"ହଁ , ଆଉ ଗୋଟିଏ କଥା , ମନେ ରଖିଥିବୁ । ଯେଉଁମାନେ ପଶୁମାନଙ୍କୁ ନିନ୍ଦା କରନ୍ତି , ସେମାନଙ୍କୁ କେବେହେଲେ ପରତେ ଯିବୁ ନାହିଁ । ତତେ କିଏ ହୁଏତ , କହି ଦେବ ଯେ , ଗଧ ହେଉଛି ଗୋଟେ ନିର୍ବୁଦ୍ଧିଆ ଜନ୍ତୁ । କୌଣସି ଲୋକ ଜିଦ୍‌ଖୋର , ଅଳସୁଆ ଏବଂ ବୋକା ହେଲେ , ଲୋକେ କହନ୍ତି , ଲୋକଟା ଗୋଟାଏ ଗଧ । କିନ୍ତୁ ମୋ ମତରେ , ଗଧ କେଭେ ବୋକା ନୁହଁ । ସେ ଏକ ଚାଲାକ ଚତୁର ପଶୁ । ବଡ଼ ଆଜ୍ଞାଧୀନ , ଦୟାଳୁ ଏବଂ କଠିନ ପରିଶ୍ରମୀ । କିନ୍ତୁ ତା ବୋଲି ତମେ ଯଦି ତା ଉପରେ ଯେତେ ଇଚ୍ଛା , ସେତେ ଲଦିବ ବା ସେ ଗୋଟାଏ ବାଜି ଘୋଡ଼ା ପାଲଟି ଯାଉ ବୋଲି ଭାବିବ , ତେବେ ସେ ପାଦେ ହେଲେ ଆଗେଇବ ନାହିଁ । ସେ କହିବ , "ମୋ ପକ୍ଷରେ ଏହା ଅନେକ ବେଶି ହୋଇ ଯାଉଛି , ମୁଁ ପାରିବି ନାହିଁ ।" ତମେ ତାକୁ ମନ ଇଚ୍ଛା ଛାଟିଆରେ ପିଟି ପାର , ସେ କିନ୍ତୁ ପାଦେ ହେଲେ ଘୁଞ୍ଚିବ ନାହିଁ ।



"ଘୋଡ଼ା କଥା ହେଉଛି ସଂପୂର୍ଣ୍ଣ ଅଲଗା । ଘୋଡ଼ା ହେଉଛି ବଡ଼ ଚଞ୍ଚଳ, ଧୈର୍ଯ୍ୟହୀନ ଜନ୍ତୁ । ସହଜରେ ସେ ଅପମାନିତ ବୋଧ କରେ । କିନ୍ତୁ କାମ କଲା ବେଳେ ସେ ଅନେକ ସମୟରେ ତା ଶକ୍ତି ଅପେକ୍ଷା ଅଧିକା କାମ କରିଯାଏ । କାମ ପ୍ରତି ତା'ର ନିଘା ଏତେ ବେଶି ଯେ, ମରିଗଲା ପର୍ଯ୍ୟନ୍ତ ବି ସେ ଦୌଡ଼ୁଥାଏ...

"ଲୋକେ କଥାରେ କହନ୍ତି, ''ହଂସ ଭଳିଆ ବୋକା !'' କିନ୍ତୁ ଅସଲରେ, ହଂସ ଭଳି ଅନ୍ୟ କୌଣସି ପକ୍ଷୀ ଏତେ ଚାଲାକ ନୁହନ୍ତି । ହଂସ ଏତେ ଚାଲାକ ଯେ, ସେ ତା'ର ମୁନିବର ପାଦ ଶବ୍ଦକୁ ବି ବାରି ପାରେ । ମନେ କର, ଥରେ ଅନେକ ରାତିରେ ତମେ ଘରକୁ ଫେରୁଛ । ରାସ୍ତାରୁ ଆସି ଫାଟକ ଖୋଲି ଅଗଣାକୁ ଆସିଲ । ଆଗନ୍ତୁକ ଜଣକ ଯଦି ଅପରିଚିତ ହୋଇଥିବେ, ତେବେ ହଂସମାନେ କେଁ କାଁ ରାବ କରି ଫଟେଇ ଦେବେ । ସେମାନେ ଯେମିତି କହିବାକୁ ଚାହାନ୍ତି, ''କିଏ ଜଣେ ଅଜଣା ଲୋକ ଆସୁଛି ?''

"ହଁ, ତାପରେ... ନିକା, ତୁ ସେ କାଗଜଗୁଡ଼ାକୁ ଚାହିଁବା ନା । ଫିଙ୍ଗି ଦିଏ ସେଗୁଡ଼ାକୁ ପାଟିରୁ । ତୁ ଜାଣିଛୁ, ହଂସମାନେ ସେମାନଙ୍କ ପିଲମାନଙ୍କୁ କେତେ ନିଘା କରନ୍ତି ! ହଂସ ଆଉ ହଂସୀ ପାଳି କରି ସେମାନଙ୍କ ଅଣ୍ଡାକୁ ଉଷୁମାନ୍ତି । ପ୍ରକୃତରେ କହିବାକୁ ଗଲେ, ଏ କାମରେ ହଂସୀ ଅପେକ୍ଷା ହଂସ ହେଉଛି



ଅଧିକ ପାରଙ୍ଗମ । ଗାଁ ମାଇପେ ଏକାଠି ମିଶି ଗଲେ, ସେମାନଙ୍କ ଗପ ଆଉ ଶେଷ ହୁଏ ନା । ହଂସୀ ଯଦି ବେଶି ସମୟ ପାଣିରେ ପହଁରୁଥାଏ କିମ୍ବା ଆଉ ପାଞ୍ଚଟା ହଂସୀଙ୍କ ସାଙ୍ଗରେ ଗପସପ କରୁଥାଏ, ତେବେ ହଂସ ସଙ୍ଗେ ସଙ୍ଗେ ପାଣି ଭିତରକୁ ପଶି ଯାଇ ତା'ର ମୁଣ୍ଡକୁ ଧରି ଅତି ଭଦ୍ର ଭାବେ ବସା ପାଖକୁ ଘେନି ଆସେ । ଦେଖିଲେ, ମନେ ହୁଏ, ସତେ ଯେମିତି ମାତୃ-କର୍ତ୍ତବ୍ୟ ପାଳନ ପାଇଁ ସେ ତାକୁ ଘେନି ଆସିଲା । କଥାଟା ଏକେବାରେ ସତ, ନିକା !

"ହଂସ ଆଉ ହଂସୀ ସେମାନଙ୍କ ଛୁଆମାନଙ୍କୁ ଧରି ବୁଲି ଯିବାର କେବେ ଦେଖିଛୁ, ନିକା ? ଦୃଶ୍ୟଟା ଦେଖିବାକୁ ବଡ଼ ମଜା । ଦଳ ମଧ୍ୟରେ ସବୁଠାରୁ ବଡ଼ ହଂସଟି ରକ୍ଷାକର୍ତ୍ତା ହିସାବରେ ସେମାନଙ୍କୁ ନେତୃତ୍ୱ ଦେଇ ଦେଇ ଆଗେଇ ନିଏ । ଗର୍ବରେ ଫାଟି ପଡ଼ୁଥାଏ ସେ ଯେମିତି — ବେକଟା ଫୁଲି ଉଠି ଆକାଶ ଧିଅରେ ଯାଇ ଲଗିଥାଏ । ଅନ୍ୟ ସମସ୍ତ ପକ୍ଷୀ ତା ଆଗରେ ଏକେବାରେ ତୁଚ୍ଛ । ତୋ ଭଳିଆ ଅନଭିଜ୍ଞତା ନଥିବା ଚଗଲା ଯଦି ତା ଆଗରେ ପଡ଼ି ଯାଏ ଏବଂ ତୁ ଯଦି ତାକୁ ବାଟ ନଛାଡ଼ୁ, ତେବେ ତୋ ଅବସ୍ଥା ସେ ଖରାପ କରିଦେବ । ମାଟି ଧିଅରେ ତା ବେକକୁ ଘଷି ପ୍ରଥମେ ସୋଡା ବୋତଲ ଭଳି ସେ ସୁ ସୁ କରିବ । ତାପରେ ଶକ୍ତ ଥଣ୍ଟରେ ଏମିତି ଖୁମ୍ପାଏ ଦେବ ଯେ, ତା ପର ଦିନ ତୋ ବାଁଆ ଗୋଡ଼ରେ

ଦେଖିବୁ ଗୋଟାଏ ବଡ଼ କଳାକଳା ନେଳିଆ ଦାଗ । ଦାଗଟା ପଡ଼ିଥିବ ଠିକ୍ ତୋ ଆଣ୍ଠୁ ତଳକୁ । ତାପରେ କାନରେ ଏତେ ଯନ୍ତ୍ରଣା ହେବ ଯେ, ତୁ ବାଇବିଛା ପାଲଟି ଯିବୁ ।

"ହଂସ ଛୁଆମାନେ ସେମାନଙ୍କ ବାପା ପଛେ ପଛେ ଯାଆନ୍ତି । ଛୁଆଗୁଡ଼ିକ ଦେଖିବାକୁ ହଳଦି – ନୀଳମିଶା, ଟିକେ ଫିକା ଫିକା । ପରସ୍ପର ସହିତ ଲଗା ଲଗି ହୋଇ ସେମାନେ ଯାଆନ୍ତି ଏବଂ ସବୁ କିଛିକୁ ନିରିଖେଇ କି ଦେଖୁଥାନ୍ତି । ସରୁ ସରୁ ବେକସବୁରେ ସେମାନଙ୍କର ସେତେବେଳକୁ ଲୁମ ଉଠି ନଥାଏ, ଏବଂ ଗୋଡ଼ଗୁଡ଼ିକ ନଡ଼ ନଡ଼ କରୁଥାଏ । ସେମାନଙ୍କୁ ଦେଖିଲେ, ମନେ ହୁଏ ନାହିଁ ଯେ, ସେମାନେ ବଢ଼ିଗଲେ, ସେମାନଙ୍କ ବାପମାନଙ୍କ ଭଳି ହେବେ । ସେମାନଙ୍କ ମା ସେମାନଙ୍କ ପଛେ ପଛେ ଆସୁଥାଏ । ତା'ର ରୂପ ବର୍ଣ୍ଣନା କରିବା କଷ୍ଟକର । ଚେହେରାରୁ ତା'ର ଫୁଟି ପଡ଼ୁଥାଏ ମମତା ଆଉ ଆତ୍ମଗର୍ବ । ସେ ଯେମିତି କହୁଥାଏ, "ଦୁନିଆ ସାରା ମୋ ଅପୂର୍ବ ସ୍ୱାମୀ ଆଉ ଚମତ୍କାର ପିଲମାନଙ୍କୁ ପ୍ରଶଂସା କରନ୍ତୁ ।'' ମା ଏବଂ ସ୍ତ୍ରୀ ହିସାବରେ ସେ କହିବାକୁ ଚାହେଁ, ''ସେମାନଙ୍କ ସହିତ ତୁଳନା ହେଲା ଭଳି ଦୁନିଆରେ କେହି ନାହାନ୍ତି ।" ତାପରେ ସେ ଚାଲିବାକୁ ଲାଗେ ଦୋହଲି ଦୋହଲି...

"ନିକା, ତୁ ତ କୁମ୍ଭୀର ଦେଖିଥିବୁ । ହଂସ ଆଉ କୁନି କୁନି ଗୋଡ଼ଥିବା ଡାକ୍‌ସହାଉଣ୍ଡ କୁକୁରମାନଙ୍କ ମଧ୍ୟରେ ଅନେକ ସାମଞ୍ଜସ୍ୟ ରହିଛି । ଏମାନେ କେବେ ଗାଡ଼ିଚପା ପଡ଼ନ୍ତି ନାହିଁ, କିନ୍ତୁ ଏମାନଙ୍କ ମଧ୍ୟରୁ କିଏ ଦେଖିବାକୁ ଅସୁନ୍ଦର କହିବା କଷ୍ଟ ।

"ଆଚ୍ଛା, ଘୋଡ଼ା କଥା ଧର । ଘୋଡ଼ାମାନଙ୍କ ସଂପର୍କରେ ଲୋକେ କ'ଣ କହନ୍ତି ? ସେମାନେ କହନ୍ତି, ଘୋଡ଼ା ହେଉଛି କାଳେ ଏକ ଅଗୁଆଁର ଜନ୍ତୁ । ଦେଖିବାକୁ ଅବଶ୍ୟ ସେ ସୁନ୍ଦର ଆଉ ଦ୍ରୁତଗାମୀ, କେଉଁଠି କେଉଁ ଜାଗା ସେ କଥା ସେ ମନେ ରଖି ପାରେ, କିନ୍ତୁ ପଶୁଟା ଏକେବାରେ ବୋକା । ବେଶି ଦୂରକୁ ଦେଖି ପାରେ ନା, ବଡ଼ ଖାମଖିଆଲୀ ଏବଂ ଅବିଶ୍ୱାସୀ । ସେମାନେ କହନ୍ତି, ଘୋଡ଼ା କେବେ ଭଲ ବନ୍ଧୁ ହୋଇ ପାରେ ନା । କିନ୍ତୁ, ନିକା, ଏ କଥା କେବଳ ସେଇ ଲୋକେ କହନ୍ତି, ଯେଉଁମାନେ ଘୋଡ଼ାକୁ ଖଟେଇକି ରଖନ୍ତି ଅନ୍ଧାରୁଆ ଘୋଡ଼ାଶାଳରେ । ବାଛରା ଘୋଡ଼ା ସହିତ କଥା କହିବାକୁ, ତାକୁ ପାଳିବାକୁ କେଡ଼େ ଖୁସି ଲାଗେ, ସେମାନେ ଜାଣନ୍ତି ନାହିଁ । ଯେଉଁମାନେ ଘୋଡ଼ାର ସହିସ କାମ କରନ୍ତି, ଗୋଡ଼ରେ ତା'ର ନାଲ ପିନ୍ଧା'ନ୍ତି, ତାକୁ ଖୁଆନ୍ତି ପିଆନ୍ତି, ସେମାନଙ୍କ ପ୍ରତି ଘୋଡ଼ାମାନେ ଯେ କେତେ କୃତଜ୍ଞ, ସେ କଥା ଯିଏ ନଦେଖିଛି, ସେ କହି ପାରିବ ନାହିଁ । ସେମାନେ କେବଳ ତା ଉପରେ ଚଢ଼ିବା କଥା ଜାଣନ୍ତି, ସେମାନେ ଚାହାନ୍ତି ଘୋଡ଼ା ସେମାନଙ୍କୁ ନକାମୁଡ଼ୁ ନାତ ନମାରୁ ଏବଂ ତା ପିଠିରୁ ଫିଙ୍ଗି ନଦେଉ । ଏମାନେ କେବେ ଘୋଡ଼ାକୁ ଥଣ୍ଡା ପାଣି ମୁନ୍ଦେ ଦେବାକୁ ବା ବାଟରେ କେଉଁଠି ରାତିରେ ରହିଗଲେ, ଘୋଡ଼ା ପିଠିରେ କମ୍ବଳ ଖଣ୍ଡେ ଢାଙ୍କି ଦେବା କଥା ଭାବନ୍ତି ନାହିଁ... ଏଭଳି ଲୋକଙ୍କୁ ଘୋଡ଼ା କାହିଁକି ସମ୍ମାନ ଦେବାକୁ ଯିବ, କହ ତ ?

"ପିଲା ବେଳୁ ଯିଏ ଘୋଡ଼ା ଚଢ଼ି ଆସିଛି, ତାକୁ ଯଦି ତୁ ଘୋଡ଼ା କଥା ପଚାରିବୁ, ସେ କହିବ ଘୋଡ଼ା ଭଳି ବୁଦ୍ଧିମାନ, ଦୟାଳୁ ଏବଂ ମହତ ଜୀବ ଆଉ ନାହିଁ । କିନ୍ତୁ ଘୋଡ଼ାର ଏ ସମସ୍ତ ଗୁଣ ନିର୍ଭର

କରେ ତା'ର ମୁନିବ ଉପରେ – ମୁନିବ ଯଦି ତା'ର ଭଲ ଏବଂ ସମଝଦାର ଲୋକ ହୋଇଥାଏ, ଘୋଡ଼ା ବି ସେଇମିତି ହେବ ।

"ଆରବ ଦେଶର ଲୋକମାନେ ଘୋଡ଼ାକୁ ସେମାନଙ୍କ ପରିବାରର ଜଣେ ଲୋକ ବୋଲି ମନେ କରନ୍ତି । ଘୋଡ଼ା ଉପରେ ସେମାନେ ସେମାନଙ୍କ ପିଲମାନଙ୍କୁ ଜଗାରଖା କରିବାର ଦାୟିତ୍ୱ ଦିଅନ୍ତି – ଘୋଡ଼ା ହେଉଛି ସତେ ଯେମିତି ଏକ ବିଶ୍ୱାସୀ ଧାଇ । କିନ୍ତୁ, କଥାଟା ଏକେବାରେ ସତ । ଏ ଭଳି ଏକ ଘୋଡ଼ା ଦୃଷ୍ଟିରେ ଯଦି ଗୋଟାଏ କଙ୍କଡ଼ା ବିଛା ପଡ଼ିଯାଏ, ତେବେ ସେ ସଙ୍ଗେ ସଙ୍ଗେ ତାକୁ ଟାପୁରେ ଦଳି ମାରି ଦିଏ ଏବଂ କୌଣସି ବଣୁଆ ଜୀବ ପାଖକୁ ତା'ର ଆସିଲେ, ଲତି ମାରି ତାକୁ ଶେଷ କରି ଦିଏ । ବେଳେବେଳେ ଧୂଳିଧୂସର ହୋଇ କୌଣସି ପିଲା ଗୁରୁଣ୍ଡି ଗୁରୁଣ୍ଡି ବଣୁଆ ବୁଦା ଆଡ଼କୁ ଗ୍ଲଲି ଯାଆନ୍ତି । ଘୋଡ଼ା ଜାଣେ ଯେ, ବୁଦା ଭିତରେ ସାପ ଲୁଚିକି ରହିଥାଏ । ତେଣୁ ଘୋଡ଼ା ସଙ୍ଗେ ସଙ୍ଗେ ପିଲାଟିକୁ ତା'ର ଜାମା କଲର କିମ୍ବା ପ୍ୟାଣ୍ଟକୁ ଧରି ନେଇ ଆସେ ତମ୍ବୁ ମଧ୍ୟକୁ । ସିଏ ଯେମିତି କହିବାକୁ ଗ୍ଲହେଁ, "ସିଆଡ଼କୁ ଯାଆ ନା, ସେଠି ବିପଦ ଅଛି !"

"ବେଳେବେଳେ ଘୋଡ଼ାକୁ ତା ମୁନିବଠାରୁ ଅଲଗା କରି ଦେଲେ, ଘୋଡ଼ା ମରି ଯିବାର ମଧ୍ୟ ଦେଖା ଯାଏ । ଘୋଡାମାନେ ଦୁଃଖରେ ଏତେ ଭାଙ୍ଗି ପଡ଼ନ୍ତି ଯେ, ସବୁବେଳେ ଆଖିରୁ ଲୁହ ଗଡ଼ାନ୍ତି ।

"ରୁଷିଆରର ଜାପରୋଜ୍ୟେ ଅଞ୍ଚଳର କସାକମାନଙ୍କ ମଧ୍ୟରେ ଗୋଟିଏ ଜନପ୍ରିୟ ଗୀତ ପ୍ରଚଳିତ ଅଛି । ଗୀତଟି ହେଉଛି ଏକ ଘୋଡ଼ା ଏବଂ ତା'ର ମୃତ ମୁନିବକୁ ନେଇ । ମୁନିବଟି ଯୁଦ୍ଧ ଭୂଇଁରେ ଲଢ଼େଇ କରୁ କରୁ ମରିକି ପଡ଼ିଛି ।

"ଘୋଡ଼ାଟି ତା'ର ନିକଟେ ହୋଇଛି ଛିଡ଼ା,
ଲାଞ୍ଜ ଛିଞ୍ଚାଡ଼ି ଘୋଉଡ଼ାଇ ଦିଏ ମାଛି,
ଆଖିକୁ ରହିଛି ଏକଲୟରେ ସେ ଗ୍ଲହିଁ
ନିଶ୍ୱାସେ ତା'ର ଉଶ୍ୱାସ କରେ ମୁହଁ ।

"ତାହେଲେ ଠିକ୍ କିଏ – ରବିବାରିଆ ଯିଏ ଘୋଡ଼ା ଚଢ଼େ ସିଏ ଠିକ, ନା ପିଲା ଦିନରୁ ଯିଏ ଘୋଡ଼ା ଚଢ଼ି ଆସିଛି ସିଏ ଠିକ?..

"ଓହୋ, ଇଡି ମଧ୍ୟରେ ଆମେ ବିଲେଇ କଥା ଭୁଲି ଯାଇଛେ, ନା ? ଏଥର ତତେ ମୁଁ ବିଲେଇ କଥା କହିବି ।

"ସେମିତି କହିବାଟା, ଅବଶ୍ୟ ଖରାପ କଥା । ତେବେ ମୁଁ ତତେ ଆଉରି ଅନେକ କଥା କହିବାକୁ ଗ୍ଲହୁଁଥିଲି – ଏ ଛୋଟ ଛୋଟ ଘୁଷୁରି ଛୁଆସବୁ କେଡ଼େ ପରିଷ୍କାର ପରିଛନ୍ନ, କୁଆ କେମିତି ଜଗୁଆଳୀ କୁକୁରକୁ ପାଞ୍ଚ ବାଟରେ ଠକେଇ ଦେଇ ହାଡ଼ ଖଣ୍ଡକୁ ଘେନି ପଳାଇଲା, ଏବଂ ଓଟ କେମିତି ... ନା ସେ ଓଟ କଥା ବର୍ତ୍ତମାନ ପାଇଁ ଥାଉ । ଏଥର୍ ଶୁଣ ବିଲେଇ କଥା ।



"ୟୁଶ୍‌କା ଯେଉଁଠି ପାରି ସେଠି ଶୋଇ ପଡ଼ୁଥିଲା – ସୋଫା ଉପରେ, କମ୍ବଳ ଉପରେ, ଚେୟାର ଉପରେ, ଏପରିକି ପିଆନୋର ସ୍ୱରଲିପି ଲେଖା ହୋଇଥିବା ସେ ଫର୍ଦ୍ଦ ଉପରେ ବି । ତାକୁ କିନ୍ତୁ ବେଶି ଭଲ ଲାଗୁଥିଲା ଖବରକାଗଜ ଉପରେ ଶୋଇବାକୁ । କାଗଜ ତଳେ ସବୁବେଳେ ସେ ଘୋଷାରି ଘୋଷାରି ହୋଇ ଖେଳୁଥାଏ, ଦେଖିଲେ ମନେ ହୁଏ, ଖବରକାଗଜର ଗନ୍ଧଟା ୟୁଶ୍‌କାର ନାକକୁ ଯେମିତି ଭଲ ଲାଗେ । ଖବରକାଗଜର ଉଷ୍ଣତାକୁ ଧରି ରଖିବାର କ୍ଷମତା ଅନେକ ।

"ସକାଳେ ଆମ ଘରେ ବିଛଣାରୁ ସମସ୍ତେ ଉଠିବାକୁ ଆରମ୍ଭ କଲେ, ୟୁଶ୍‌କା ପ୍ରଥମେ ଆସି ଦେଖା କରୁଥିଲା ମୋ ସହିତ । କିନ୍ତୁ ମୁଁ ଯେଉଁ କୋଠରୀରେ ଶୋଉଥିଲି, ତା ପାଖ କୋଠରୀରୁ ପିଲାମାନଙ୍କର ସକାଳ ପହରିଆ ଡାକ ତା'ର ସେ ପ୍ରଖର କାନରେ ବାଜିଲେ ଯାଇ ସେ ଆସୁଥିଲା ।

"ପ୍ରଥମେ ସେ ତା'ର ମୁହଁ ଆଉ ଥାବା ଦେଇ କବାଟଟିକୁ ଖୋଲି ଦେଉଥିଲା । କବାଟଟି, ଅବଶ୍ୟ, ଜୋରରେ ବନ୍ଦ ନଥାଏ । ଘର ଭିତରକୁ ପଶି ଆସି ଖପାଟାଏ ସେ ମାରି ଦିଏ ମୋ ଶେଜ ଉପରକୁ । ତାପରେ ସେ ତା'ର ସେ ନାଲିଆସିଆ ନାକରେ ମୋ ହାତ ଆଉ ଗାଲକୁ ଆଦରରେ ଆଉଁଷି ଦିଏ ଏବଂ ଧୀରେ ଧୀରେ ଘୁଡ଼ୁ ଘୁଡ଼ୁ ଶବ୍ଦ କରେ ।

"ୟୁଶ୍‌କା କେବେ ମିଆଉଁ ମିଆଉଁ କରିବାର ମୁଁ ଶୁଣି ନି । କିନ୍ତୁ ସବୁବେଳେ ସେ ମଧୁର ବାଜଣାଟି ପରି ଘୁଡ଼ୁ ଘୁଡ଼ୁ ଶବ୍ଦ କରୁଥିଲା । ଏହି ଘୁଡ଼ୁ ଘୁଡ଼ୁ ଶବ୍ଦଟା କିନ୍ତୁ ସବୁବେଳେ ଏକା ରକମର ନୁହଁ – ସେଥିରୁ ପ୍ରକାଶ ପାଉଥିଲା ଉତ୍‌କଣ୍ଠା, ସ୍ନେହ, ପ୍ରତ୍ୟାଖ୍ୟାନ, କୃତଜ୍ଞତା, ଅସନ୍ତୋଷ, ତିରସ୍କାର କିମ୍ବା ଦାବୀ । ଅଳ୍ପ ଘୁଡ଼ୁ ଘୁଡ଼ୁ ଶବ୍ଦ ଅର୍ଥ "ମୋ ପଛେ ପଛେ ଆସ ।"

"ତାପରେ ସେ ବିଛଣାରୁ କୁଦାଟାଏ ମାରି ଦେଉଥିଲା ଏବଂ ପଛକୁ ନଚାହିଁ ସିଧା ଛୁଟି ଯାଉଥିଲା ଦୁଆର ପାଖକୁ । ମୁଁ ଯେ ତା ନିର୍ଦ୍ଦେଶ ମୁତାବକ କାମ କରିବି, ଏଥିରେ ତା'ର ତିଳେ ହେଲେ ସନ୍ଦେହ ନଥିଲା ।

"ମୁଁ ମଧ୍ୟ ତା ଆଦେଶକୁ ମାନିକି କାମ କରୁଥିଲି । ସଙ୍ଗେ ସଙ୍ଗେ ଦେହରେ ପୋଷାକ ଦେଇ ବାହାରି ଆସୁଥିଲି ଦରଅନ୍ଧାରୁଆ ଅଳିନ୍ଦକୁ । ତା'ର ସେ ସବୁଜମିଶା ହଳଦିଆ ସ୍ଫଟିକ ପରି ଆଖି ଯୋଡ଼ିକ ଚକ୍ ଚକ୍ କରୁଥିଲା, ଏବଂ ସେ ଅପେକ୍ଷା କରୁଥିଲା ଦୁଆର ମୁହଁରେ । ଘର ଭିତରେ ଶୋଇଥାନ୍ତି ଚାରି ବର୍ଷର ଗୋଟିଏ ପିଲା ଆଉ ତା'ର ମା । ଦୁଆରଟିକୁ ମୁଁ ସଙ୍ଗେ ସଙ୍ଗେ ଖୋଲି ଦିଏ । ୟୁଶ୍‌କା ତାପରେ ଘୁଡ଼ୁ ଘୁଡ଼ୁ କରିଉଠେ କୃତଜ୍ଞତାରେ । ନରମ ଦେହଟିକୁ ତା'ର ଅଙ୍କେଇ ବଙ୍କେଇ ଏବଂ ମୋଟା ଲାଙ୍ଗୁଡ଼ଟାକୁ ହଲେଇ ହଲେଇ ସେ ସଟ୍‌କିନା ଗଳିଯାଏ ପିଲାଙ୍କ ବଖୁରି ଭିତରକୁ ।

"ତାପରେ ଚାଲେ ପ୍ରଭାତ ଅଭିନନ୍ଦନ ପାଳି । ପ୍ରଥମେ ଅଧାସରକାରୀ ଦେଖା ସାକ୍ଷାତ: ମାଙ୍କ ବିଛଣାକୁ ଡେଇଁ ପଡ଼ି ଟିକେ ଘୁଡ଼ୁ ଘୁଡ଼ୁ ଶବ୍ଦ, ତା ଅର୍ଥ, ସୁପ୍ରଭାତ ସାଆନ୍ତାଣୀ ! ହାତକୁ ତାଙ୍କର ସେ ନାକ ଦେଇ ଘଷି ଦିଏ, ତାପରେ ଗାଲକୁ । ଏତିକିରେ ଶେଷ ହୁଏ ସକାଳ ପହରିଆ ସାକ୍ଷାତ । ତାପରେ ସେ ଡେଇଁ ପଡ଼େ ବିଛଣା ଉପରୁ ମଶୁରି ଖୋଲା ଥିବା ଶିଶୁ ଖଟଟି ଉପରକୁ । ଉଭୟେ ଉଭୟଙ୍କୁ ସସ୍ନେହରେ ଅଭିନନ୍ଦନ ଜଣାନ୍ତି ।

"ଘୁଡ଼ୁ ଘୁଡ଼ୁ । ସୁପ୍ରଭାତ ବନ୍ଧୁ ! ଭଲ ନିଦ ହୋଇଛି ତ ?"

"ପ୍ରିୟ ୟୁଶ୍‌କା, ବନ୍ଧୁ ୟୁଶ୍‌କା, ପ୍ରାଣର ୟୁଶ୍‌କା ମୋର !"



"ଅନ୍ୟ ବିଛଣାରୁ ତାପରେ ଶୁଣାଯାଏ , "କୋଲ୍ୟା , ତତେ କେତେ ଥର ମୁଁ ଆଉ କହିବି , ସେ ବିଲେଇଟାକୁ ଚୁମା ଦିଏ ନା ବୋଲି ! ବିଲେଇ ଧିଅରୁ ପରା ରୋଗା ଜୀବାଣୁସବୁ ବାହାରନ୍ତି ..."

"ୟୁଶ୍‌କା କିନ୍ତୁ କାହାଠୁ ଦୟା ଭିକ୍ଷା କରୁ ନଥିଲା । (ସେବୁବେଳେ ସେ ଆନ୍ତରିକତାର ସହିତ ଗ୍ରହୁଁଥିଲା ସାହାଯ୍ୟ) । ମାଂସ ଦେବା ପାଇଁ ସେ କଂସେଇ ଘର ପୁଅର ଆସିବା ସମୟ ଆଉ ତା'ର ପାଦ ଶବ୍ଦକୁ ସେ ବାରି ପାରୁଥିଲା ଭଲ ଭାବେ । ବାହାରେ ଥିଲେ , ସେ ବାରଣ୍ଡା ଉପରେ ତାକୁ ଅପେକ୍ଷା କରି ବସିଥାଏ । ରୋଷେଇ ଘରର କବାଟକୁ ସେ ଏମିତି କୌଶଳରେ ଖୋଲି ଦେଉଥିଲା ଯେ , ତୁ ଦେଖିଲେ , ଆଶ୍ଚର୍ଯ୍ୟ ହୋଇଯିବୁ । ପିଲାଙ୍କ ବଖୁରିର କବାଟରେ ଲାଗିଥିବା ସେ ଗୋଲମୁଠା ଭଳି ରୋଷେଇ ଘର କବାଟର ଗୋଲମୁଠାଟା ହାତୀଦାନ୍ତରେ ନଥିଲା । ସେଟା ଥିଲା ପିତଳରେ ତିଆରି, ଟିକେ ଲମ୍ବାଳିଆ । ୟୁଶ୍‌କା ଦୌଡ଼ି ଦୌଡ଼ି ଯାଇ କବାଟ ଉପରକୁ ଡିଆଁଟାଏ ମାରି ଦେଉଥିଲା ଏବଂ ଆଗ ଗୋଡ଼ରେ ଧରୁଥିଲା ମୁଠାଟାକୁ । ପଛ ଗୋଡ଼ର ଥାବା ଦିଇଟାକୁ ଠେସ ଲଗେଇ ଦେଉଥିଲା କାନ୍ଥ ଧିଅରେ । ତାପରେ ସେ ତା'ର ନରମ ଧିଅ ଦେଇ କବାଟ ଉପରେ ବସାଇ ଦେଉଥିଲା ଦୁଇ ତିନିଟା ଧକା । କବାଟଟା ତାପରେ ଖୋଲି ଯାଉଥିଲା ଫଟ୍‌କିନା । ୟୁଶ୍‌କା ସଟ୍‌କିନା ପଶି ଯାଉଥିଲା ଭିତରକୁ ।

"ବେଳେବେଳେ କଂସେଇ ଘର ଟୋକାଟି ମାଂସକୁ ଟିକି ଟିକି କରି କାଟିବାରେ ଏବଂ ଓଜନ କରିବାରେ ଅନେକ ଡେରି କରୁଥିଲା । ୟୁଶ୍‌କା ସେତେବେଳେ ଧୈର୍ଯ୍ୟହରା ହୋଇ ଟେବୁଲ କଡ଼ରେ ଥାବାକୁ ପୂରାଇ ଆଗକୁ ପଛକୁ ଖାଲି ହେଉଥାଏ । ତାକୁ ଦେଖିଲେ , ମନେ ହୁଏ , ସତେ ଯେମିତି କିଏ ଜଣେ ବ୍ୟାୟାମବିଦ୍ ଲୁହାଦଣ୍ଡ ଉପରେ କସରତ କରୁଛି । କିନ୍ତୁ , ଏସବୁ କରୁଥିଲା ବେଳେ ପାଟିରୁ ତା'ର ଶବ୍ଦଟିଏ ବି ବାହାରେ ନାହିଁ ।

"କଂସେଇ ଘର ପିଲାଟା ଥିଲା ବଡ଼ ହସଖୁସିଆ , ଗାଲ ଦୁଇଟି ଲାଲ , ବଡ଼ ଲାଜକୁଳିଆ । କଥା କଥାକେ ପାଟିରୁ ତା'ର ଉଛୁଳି ପଡ଼ୁଥିଲା ହସ । ଜୀବ ଜନ୍ତୁଙ୍କ ପ୍ରତି ସେ ଥିଲା ଖୁବ୍ ସ୍ନେହଶୀଳ । ୟୁଶ୍‌କାକୁ ସେ ଖୁବ୍ ଭଲ ପାଉଥିଲା । ଧିଅକୁ ତା'ର ଟିକେ ଆଉଁଷି ନଦେଲା ପର୍ଯ୍ୟନ୍ତ ୟୁଶ୍‌କା ଛାଡ଼ୁ ନଥିଲା ତାକୁ । ଘରି ପାଖରେ ତା'ର ଡେଉଁଥିଲା ଏବଂ ତାକୁ ଉଦ୍ଧତ ଭାବେ ଗ୍ରହୁଁଥିଲା । ସତରେ , ସେ ଥିଲା



ଗୋଟେ ଗର୍ବୀ ବିଲେଇ ! କଂସେଇ ଘର ପିଲଟିକୁ ସେ ମୋଟେ ଖାତିରି କରୁ ନଥିଲା, ତା ଆଖିରେ ସେ ଥିଲା ପ୍ରତିଦିନ ତା ପାଇଁ ମାଂସ ଆଣୁଥିବା ଏକ ପିଲା । ଯେଉଁସବୁ ଜିନିଷ ତା'ର ଘରେଇ ବିଷୟବସ୍ତୁର ଅନ୍ତର୍ଗତ ନଥିଲା ଏବଂ ତାକୁ ଦେଖା ଶୁଣା କରିବା କାର୍ଯ୍ୟ ମଧ୍ୟକୁ ଆସୁ ନଥିଲା, ସେସବୁକୁ ସେ ଦେଖୁଥିଲା ରାଜାଭଳି ଗର୍ବର ସହିତ । ଆମକୁ ତ ସେ ଦେଖୁଥିଲା ତା'ର ଦୟାରପାତ୍ର ଭଳି ।

"ମୁଁ ବି ତା ଆଦେଶ ମୁତାବକ କାମ କରିବାକୁ ଭଲ ପାଉଥିଲି । ଦୃଷ୍ଟାନ୍ତ ସ୍ୱରୂପ, ମୋତେ ତତଲା ଫ୍ରେମ୍ ଉପରେ କାମ କରିବାକୁ ପଡ଼ୁଥିଲା, ଯତ୍‌ନର ସହିତ ତରଭୁଜ ଲତାରୁ ମଲଙ୍ଗଗୁଡ଼ାକୁ କାଢ଼ି ଫିଙ୍ଗି ଦେବାକୁ ହେଉଥିଲା । ଏଥି ପାଇଁ ମୋତେ କାମ କରିବାକୁ ପଡ଼ୁଥିଲା ହିସାବ ମୁତାବକ । ଗ୍ରୀଷ୍ମର ମୁଣ୍ଡଫଟା ଖରା ବା ତତଲା ମାଟି ବଡ଼ ଅସହ୍ୟ ବୋଧ ହେଉଥିଲା । କିନ୍ତୁ ୟୁଶ୍‌କା ଚୁପ୍‌ଚାପ୍ ଆସି ଯାଉଥିଲା ମୋ ପାଖକୁ 'ଘୁଡ଼ୁ ଘୁଡ଼ୁ' ଶବ୍ଦ କରି କରିକା ।

"ତା ଅର୍ଥ, 'ଆସ ମୋତେ ଶୋଷ ଲାଗିଲାଣି ।'

ଅନେକ କଷ୍ଟରେ ମୁଁ ନିଜକୁ ସଂଜତ କରି ନେଉଥିଲି । ତାପରେ ୟୁଶ୍‌କା ମୋତେ ବାଟ କଢ଼େଇ ନେଉଥିଲା । ସେ ଗଲା ବେଳେ କିନ୍ତୁ ପଛକୁ କେବେ ଫେରିକି ଚାହେଁ ନା । ମୁଁ ବେଳେବେଳେ ମନେ ମନେ ଭାବେ, ନଗଲେ, କ'ଣ ଚଳନ୍ତା ନାହିଁ ? ଆସ୍ତେ ଆସ୍ତେ ଗଲେ, କ'ଣ ହୁଅନ୍ତା ନାହିଁ ? ସେ କିନ୍ତୁ ମୋତେ ବଗିଚାରୁ ଅଗଣାକୁ, ତାପରେ ରୋଷେଇ ଘରକୁ ଏବଂ ଶେଷରେ ବାରଣ୍ଡା ଦେଇ ଘର ଭିତରକୁ ଆଗେଇ ନିଏ । ମୁଁ ଅତି ନମ୍ରତା ସହକାରେ ତା ପାଇଁ ଦୁଆର ଖୋଲି ଦିଏଁ ଏବଂ ଅତି ସମ୍ମାନର ସହିତ ଯିବାକୁ ଦିଏଁ । ତାପରେ ସେ ଅତି ଆନନ୍ଦରେ ଡେଇଁ ପଡ଼େ ଗାଧୁଆ ଘର କଳଠିପି ଉପରକୁ ଏବଂ କଳଠିପିର ଯେଉଁ ପାଖରେ ଶଙ୍ଖମଲମଲ ପଥର ଛିଆ ଯାଇଛି ତାକୁ ତା ତିନି ଗୋଡ଼ର ଥାବାରେ ଜାବୁଡ଼ି ଧରି ବାହାରକୁ ଗୋଟିଏ ଥାବା ହଲାଇ କି ରଖୁଥିଲା ଭାରସାମ୍ୟ ରଖିବା ପାଇଁ । ତାପରେ ସେ ମୋ ଆଡ଼କୁ କାନ୍ଧ ଉପର ଦେଇ ଚାହୁଁଥିଲା ଏବଂ କହୁଥିଲା :

" ଘୁଡ଼ୁ ଘୁଡ଼ୁ । ପାଣି କଳଟା ଟିକେ ଖୋଲି ଦିଅ !"

"ସଙ୍ଗେ ସଙ୍ଗେ ମୁଁ କଳଟାକୁ ଖୋଲି ଦିଏ ଏବଂ ରୂପା ରଙ୍ଗର ପାଣି ଝର ଝର ହୋଇ ଝରିବାକୁ ଲାଗେ । ୟୁଶ୍‌କା ସଙ୍ଗେ ସଙ୍ଗେ ତା କୁନି ଫିକାଳିଆ ଲାଲ ରଙ୍ଗର ଜିଭରେ ତରତର ହୋଇ ଚାକୁ ଚାକୁ କରି ପାଣି ପିଇବାକୁ ଲାଗେ । ପାଣି ପିଇଲା ବେଳେ ବେକଟି ତା'ର ସୁନ୍ଦର ଭାବେ ବାଙ୍କି ଆସିଥାଏ, ଏବଂ ସେ ଛିଡ଼ା ହୋଇ ରହିଥାଏ ।

"ବିଲେଇମାନେ କୋଚିତ ପାଣି ପିଅନ୍ତି, କିନ୍ତୁ ଯେତେବେଳେ ପିଅନ୍ତି, ଏକାବେଳକେ ଅନେକ ପିଇ ଦିଅନ୍ତି । ୟୁଶ୍‌କାକୁ ଚିଡ଼େଇବା ପାଇଁ ବେଳେବେଳେ ସେ ନିକେଲ କୋଟ ଦିଆ ପାଣିନଳଟିକୁ ବନ୍ଦେଇ ଦେଉଥିଲି ବା ପାଣିର ବେଗକୁ ଏତେ କମେଇ ଦେଉଥିଲି ଯେ, କେବଳ ବୁନ୍ଦା ବୁନ୍ଦା ହୋଇ ପାଣି ପଡ଼ୁଥିଲା ।

"ୟୁଶ୍‌କା ଏହା ଦ୍ୱାରା ଖୁବ୍ ରାଗି ଯାଉଥିଲା, ଏବଂ ଧୈର୍ଯ୍ୟ ଧରି ପାରୁ ନଥିଲା । ସଙ୍ଗେ ସଙ୍ଗେ ତା'ର ସେ ଅଶ୍ୱସ୍ତିଜନକ ଭଙ୍ଗିରୁ ଓଜନଟାକୁ କମେଇ ଆଣି ମୁଣ୍ଡଟିକୁ ବୁଲେଇ ଦେଲା ମୋ ଆଡ଼କୁ ।



ତା ଆଖିର ଡୋଳା ଦୁଇଟି ହଳଦିଆ ପୁଷ୍ପରାଗ ମଣି ପରି ସ୍ୱାଭାବିକ ଭର୍ତ୍ସନାର ସହିତ ଗ୍ୱହିଁ ରହୁଥିଲା ମୋତେ ।

"ଘୁଡ଼ୁ ଘୁଡ଼ୁ! ଅର୍ଥାତ୍, ବୋକାମିଟା ଅନେକ ବେଶି ହୋଇ ଯାଉଛି!"

"ତାପରେ ସେ ପାଣି କଳଟାକୁ ଅନେକ ଥର ନିଜ ନାକରେ ଘଷିବାକୁ ଲଗିଲା ।

"ମୁଁ ବଡ଼ ଲଜ୍ଜାବୋଧ କରେ ଏବଂ ତାକୁ ମାଫି ମାଗି ପୁଣି ଖୋଲି ଦିଏ କଳଟାକୁ ।

"ଏଥର ତୋତେ ଆଉ ଏକ ଘଟଣା କଥା କହିବି, ନିକା ।

"ତୁ ଜାଣିଛୁ, ୟୁଶ୍‌କା କେଉଁଠି ବସୁଥିଲା? ସେ ବସୁଥିଲା ମେଜିଆ ଉପରେ ପଡ଼ିଥିବା ଗଦିଦିଆ ଆସନ ସାମ୍ନାରେ ଏକ ଖବରକାଗଜ ଉପରେ । ଘର ଭିତରକୁ ପଶି ଆସି ମୁଁ ଛିଡ଼ା ହୋଇ ଯାଉଥିଲି । ୟୁଶ୍‌କା ମୋତେ ଏମିତି ଏକଲୟରେ ଗ୍ୱହିଁ ରହୁଥିଲା ଯେ, ଆଖିରେ ତା'ର ପଲକ ପଡ଼ୁ ନଥିଲା । ମୁଁ ମଧ୍ୟ ତା ଆଡ଼କୁ ସେଇମିତି ଗ୍ୱହିଁ ରହୁଥିଲି – ଏଇମିତି ଭାବେ କଟିଯାଉଥିଲା ମିନିଟିଏ ଖଣ୍ଡ । ତାପରେ ମୁଁ ବୁଝି ପାରୁଥିଲି ପରିଷ୍କାର ଭାବେ ତା'ର ମନୋଭାବ ।

"ସେ ଯେମିତି କହିବାକୁ ଗ୍ୱହୁଁଥିଲା, ତମେ ଜାଣିଛ, ମୁଁ କ'ଣ ଗ୍ୱହୁଁଛି, କିନ୍ତୁ ତମେ ବାହାନା କରୁଛ ନ ଜାଣିଲା ଭଳି । ଠିକ୍ ଅଛି, ମୁଁ କିନ୍ତୁ ତମକୁ ଅନୁରୋଧ କରିବି ନାହିଁ ।"

"ତାପରେ ମେଜିଆ ଉପରୁ ଖବରକାଗଜ ଖଣ୍ଡକୁ ଟୋକି ଆଣିବା ପାଇଁ ମୁଁ ଯେତେବେଳେ ନଇଁ ପଡ଼େ, ହଠାତ୍ ଆସ୍ତେକିନା ଶୁଣିବାକୁ ପାଏଁ କ'ଣ ଗୋଟାଏ ପଡ଼ିବାର ଶବ୍ଦ । ସିଏ ଯାଇଁ ଅପେକ୍ଷା କରିଥାଏ ସେଇ ଗଦିପକା ଚେୟାରଟି ପାଖରେ । ଆଖିରେ ତା'ର ରାଗଟା କୁହୁଳିଲା ଭଳି ଦିଶୁଥାଏ । ମୁଁ ସଙ୍ଗେ ସଙ୍ଗେ କାଗଜରେ ଗୋଟାଏ ତମ୍ବୁ ତିଆରି କରି ଢାଙ୍କି ପକାଏ ତାକୁ । ସାରା ଦେହଟି ତା'ର ଢାଙ୍କି ହୋଇ ଯାଏ, କେବଳ ଲାଙ୍ଗୁଳଟି ବାହାରିଥାଏ ପଦାକୁ । କିନ୍ତୁ ସେଟି ବି କ୍ରମଶଃ ଟାଣି ହୋଇଯାଏ ସେ କାଗଜ ତମ୍ବୁ ଭିତରକୁ । ତାପରେ କାଗଜଟା ଥରେ, ଦୁଇ ଥର ଖଡ଼ ଖଡ଼ ଶବ୍ଦ କରି ଉଠେ, ହଲଚଲ ହେବାକୁ ଲାଗେ । ତା ଭିତରେ ଶୋଇ ପଡ଼େ ୟୁଶ୍‌କା । ତାପରେ ଗୋଡ଼ ଟିପି ଟିପି ମୁଁ ବାହାରି ଆସେ ଘର ମଧ୍ୟରୁ ।

"ବେଳେବେଳେ ଘରେ ଆମର ୟୁଶ୍‌କା ସହିତ ବେଶ ଶାନ୍ତିପୂର୍ଣ୍ଣ ମୁହୂର୍ତ୍ତ ବି ଆସିଥାଏ । ସେଭଳି ମୁହୂର୍ତ୍ତସବୁ ଆସିଥାଏ ଯେତେବେଳେ ଅନେକ ରାତି ପର୍ଯ୍ୟନ୍ତ ମୁଁ ଜାଗି ରହେ କିଛି ଲେଖା ଲେଖି କରିବା ପାଇଁ । ଅଧିକ ରାତି ପର୍ଯ୍ୟନ୍ତ ଲେଖା ଲେଖି କରିବାଟା ବଡ଼ କ୍ଳାନ୍ତିଦାୟକ କାମ । କିନ୍ତୁ ଥରେ ଅଭ୍ୟାସରେ ପଡ଼ିଗଲେ, ବଡ଼ ଆନନ୍ଦ ଲାଗେ ।

"ଅନେକ ସମୟରେ ଲେଖିଲା ବେଳେ ମନମୁତାବକ ଶବ୍ଦଟିଏ ମନେ ପଡ଼େ ନା । କାଗଜ ଉପରେ ଲେଖିଥିବା ଶବ୍ଦଟାକୁ କଲମ ମୁନରେ ଗାରେଇ ଦିଏ । ତାପରେ ଲେଖା ବନ୍ଦ କରି ମନେ ପକାଇବାକୁ ଚେଷ୍ଟା କରେ ସେଇ ଉପଯୁକ୍ତ ଶବ୍ଦଟିକୁ । କିନ୍ତୁ ସେ କ'ଣ ! ବତୀରେ ତେଲ ସରି ଆସିଥାଏ, ଏବଂ ଆଲୁଅଟା ଧକ୍ ଧକ୍ କରୁଥାଏ । ହଠାତ୍ କାନରେ ବାଜେ କାହାର ଧୀର ପାଦ ଶବ୍ଦ । ରାତିଟା ଦୀର୍ଘ ମନେ ହେଉଥାଏ, ସବୁ ଚୁପ୍ ଚାପ୍, ନିଶ୍ଚଳ ଲାଗୁଥାଏ । ସମସ୍ତେ ଶୋଇ ପଡ଼ିଥାନ୍ତି – ପଶୁ ପକ୍ଷୀ, ଘୋଡ଼ା ଏବଂ ପିଲାମାନେ, ଏପରିକି ଆଉ ବଖୁରିରେ କୋଲ୍ୟାର କଣ୍ଢେଇମାନେ ମଧ୍ୟ । କୁକୁରସବୁ ବି ଆଉ ଭୁକା ଭୁକି କରୁ ନଥାନ୍ତି, ସେମାନେ ମଧ୍ୟ ଶୋଇ ପଡ଼ିଥାନ୍ତି । ଆଖି ଦୁଇଟି ମୋର ଭାରୀ ହୋଇ ବୁଜି ହୋଇ ଆସୁଥାଏ, ମୁଣ୍ଡର ଚିନ୍ତାସବୁ ଗୋଳମାଳ ହୋଇ ଯାଏ, ହଜି ଯାଏ କୁଆଡ଼େ ସବୁ । ଆଶ୍ଚର୍ଯ୍ୟ ହୋଇ ଭାବେ, କ'ଣ ମୁଁ ଏକ ଘନ ଜଙ୍ଗଲରେ ନା ବଡ଼ କୌଣସି ଏକ ମିନାର ଉପରେ ବସିଛି । ହଠାତ୍ କିଏ ସେ ମୋତେ ହଲେଇ ଦିଏ ଏତିକି ବେଳେ – ଫେରି ଆସେ ମୋର ଖିଆଲ । ହଲେଇ ଦେଲା ବୋଲଟି ଆଉ କେହି ନୁହଁ, ସେଇ ୟୁଶ୍‌କା । ମେଜିଆ ଉପରୁ ଥିରିକିନା କୁଦାଟିଏ ସେ ମାରି ଦେଇଥାଏ ସେ ଟେବୁଲ ଉପରକୁ । ମୁଁ କିନ୍ତୁ ଲକ୍ଷ୍ୟ କରି ପାରି ନଥାଏ ।

"ଟେବୁଲ ଉପରେ ଗୋଟିଏ ଜାଗାରେ ଛିଡ଼ା ହୋଇ ଚକା ଭଉଁରୀ ଖେଳିଲା ଭଳି ସେ ବୁଲୁଥାଏ । ତା ମନମୁତାବକ ଜାଗାଟିଏ ପାଉ ନଥାଏ ସେ ବସିବା ପାଇଁ । ତାପରେ ସେ ଆସି ବସି ପଡ଼େ ମୋ ଡାହାଣ ହାତ ଉପରେ । ସତେ ଯେମିତି ଲୋମଶ ପେଣ୍ଡୁଟିଏ । ବେଳେବେଳେ କାନ୍ଧ ଉପରେ କୁଜେଇକି ବସି ପଡ଼େ ସେ । ତା ଥାବାର ସେ ମୁନିଆଁ ନଖଗୁଡ଼ିକ କୁଆଡ଼େ ଭିତରକୁ ପଶି ଯାଇଥାଏ, କେବଳ ଭେଲ୍‌ଭେଟ ଭଳି ନରମ ଦସ୍ତାନା କେତୋଟି ବାହାରକୁ ବାହାରି ଆସିଲା ଭଳି ଲାଗେ ।

"ତାପରେ କଲମଟି ମୋର ପୁଣି ଚଞ୍ଚଳ ହୋଇ ଉଠେ । ଲେଖିବାକୁ ମୁଁ ଆରମ୍ଭ କରି ଦିଏ । ମନ

ଭିତରେ ଖେଳି ଯାଏ ଏକ ପ୍ରେରଣାର ସୁଅ । ବେଳେବେଳେ ମୁଣ୍ଡ ନବୁଲେଇ କି ମୁଁ ଦେଖେ, ବିଲେଇଟି ତିନି ଚତୁର୍ଥାଂଶ ମୋ ଆଡ଼କୁ ଢଳି ଆସିଛି । ତା'ର ସେଇ ମଟମଟିଆ ନୀଳାଭ ଆଖି ଦୁଇଟି ଯାଇ ନିବଦ୍ଧ ଥାଏ ବତୀଟି ଉପରେ । ଦୀପ ଶିଖା ଉପରେ କଳା ଦାଗଟାଏ ଉପରୁ ତଳ ପର୍ଯ୍ୟନ୍ତ ଖୁରଧାର ଭଳି ପତଳା ଦିଶୁଥାଏ । ମୋ ଆଖି ପଲକର ଗତି ଯେତେ ଚଞ୍ଚଳ ହୋଇ ଉଠୁ ନା କାହିଁକି, ୟୁଶ୍‌କା ଚାହିଁ ରହିଥାଏ ତାକୁ । କ୍ରମଶଃ ସେ ତା'ର ଆନନ୍ଦରେ ମୁଣ୍ଡଟିକୁ ମୋ ଆଡ଼କୁ ଢାକି ଆଣେ । ବତୀ ଶିଖାର ସେ କଳା କଳା ଦାଗସବୁ ହଠାତ୍ ପାଉଁଶ ଘେରା କଳାକଳା ପତଳା ଚକ୍ର ପାଲଟି ଯାଏ ।

"ଏଥର ପୁଣି ଆମେ ଲେଖିବାକୁ ଆରମ୍ଭ କରି ଦେବା, ୟୁଶ୍‌କା !" ମୁଁ ପଚାରେ ।

"ଅନେକ ସମୟରେ ଲେଖାକୁ କାଟିବାକୁ ପଡ଼େ, ନୂଆ ନୂଆ ଶବ୍ଦ ବସେଇବାକୁ ହୁଏ । କେତେ ଚମତ୍କାର ଶବ୍ଦସବୁ ଆପଣାଛାଏଁ ଆସି ଯାଏ ମୁଣ୍ଡ ଭିତରକୁ । କିନ୍ତୁ କିଛି ସମୟ ପରେ ମୁଣ୍ଡଟା ମୋର ପୁଣି ଭାରୀ ଭାରୀ ଲାଗେ, ପିଠିଟା ବିନ୍ଧେ, ଡାହାଣ ହାତରେ ଆଙ୍ଗୁଳିଗୁଡ଼ିକ ଥରିବାକୁ ଲାଗେ । ଭାବେ, ଏଥର ଶୋଇ ପଡ଼ିବା ଉଚିତ ?

"ୟୁଶ୍‌କା ମଧ୍ୟ ସେଇଆ ଭାବୁଥିଲା । ଅନେକ ବେଳୁ ଇତି ମଧ୍ୟରୁ ସେ ଗୋଟାଏ ଖେଳ ଆବିଷ୍କାର କରି ଦେଇଥାଏ । କାଗଜ ଉପରେ ମୁଁ ଲେଖି ଚାଲିଲା ବେଳେ ସେ ଧାଡ଼ିଗୁଡ଼ିକୁ ଲକ୍ଷ୍ୟ କରୁଥାଏ ଏକଲୟରେ । କଲମ ମୂନକୁ ମୋର ସେ ଏ ଭଳି ଭାବେ ଚାହିଁ ରହିଥାଏ ଯେ, ସତେ ଯେମିତି ମୁଁ



ଅସୁନ୍ଦରିଆ କଳା ମାଛିଗୁଡ଼ିକୁ ସେଥିରେ ଦାବି ଦେଇ ଯାଉଛି । ହଠାତ୍ ସେ ତା'ର ଥାବାରେ ଶେଷ ମାଛିଟିକୁ ଗୁପୁଡ଼ାଟାଏ ମାରି ଦିଏ । ଗୁପୁଡ଼ାଟା ଏତେ ଶୀଘ୍ର ଏବଂ ଜୋରରେ ବସାଇ ଦିଏ ଯେ, କଳା କଳା ରକ୍ତଗୁଡ଼ାକ କାଗଜ ଉପରେ ଛାପି ହୋଇ ଯାଏ । ତାପରେ ମୁଁ ବାଧ୍ୟ ହୋଇ କହେ, 'ଏଥର ଶୋଇବା ଚାଲ, ୟୁଶ୍କା । ମାଛିମାନେ ମଧ୍ୟ କାଲି ସକାଳ ପର୍ଯ୍ୟନ୍ତ ଶୋଇ ପଡ଼ନ୍ତୁ !'

"ଝରକା ବାଟେ ମୋର ସେ ପ୍ରିୟ ଆଶ୍ ଗଛର ଫିକା ଚେହେରାଟା ସେତେବେଳକୁ ଦେଖା ଯାଉଥାଏ । ୟୁଶ୍କା ମୋଡ଼ିମାଡ଼ି ହୋଇ ମୋ ଗୋଡ଼ ପାଖକୁ କମ୍ବଳ ଉପରେ ଶୋଇ ପଡ଼େ ।

"ଦିନେ ୟୁଶ୍କାର ବନ୍ଧୁ ଅର୍ଥାତ୍ ତାକୁ ବିରକ୍ତ କରୁଥିବା କୋଲ୍ୟା ବେମାର ପଡ଼ିଗଲା ।

"କୋଲ୍ୟା ଘରକୁ ୟୁଶ୍କାକୁ ଛଡ଼ା ଗଲା ନାହିଁ, ଏବଂ ନଛାଡ଼ିବାଟା ମଧ୍ୟ ଉଚିତ ଥିଲା । ୟୁଶ୍କା କ'ଣ ସେ କଥା ବୁଝିଲା ! ସେ ଅସ୍ଥିର ହୋଇ କାହାକୁ ଗଡ଼େଇ ପକେଇଲା ତ; ଆଉ କିଛିକୁ ଧକ୍କା ମାରି ଭାଙ୍ଗି ଦେଲା । କୋଲ୍ୟାକୁ ଶୋଇ ଦେଲା ନାହିଁ, ଏପରିକି ତାକୁ ଭୟ ବି ଦେଖାଇଲା । କିନ୍ତୁ ତାକୁ ଯେତେବେଳେ ବୁଝାଇ ଦିଆଗଲା ବ୍ୟାପାରଟା, ସେ ସଙ୍ଗେ ସଙ୍ଗେ ଘଟଣାଟାକୁ ବୁଝି ପାରିଲା । ମେଜିଆ ଉପରେ କୁକୁର ଭଳି ସେ ଶୋଇ ରହିଥାଏ କୋଲ୍ୟାର କୋଠରିଟି ବାହାରେ । କବାଟ ଫାଙ୍କରେ ଫିକା ଲାଲ ରଙ୍ଗର ନାକଟିକୁ ଗୁଞ୍ଜି ସେଇ ଭଳି ଚାରି ଦିନ କାଳ ସେ ପଡ଼ି ରହିଲା, କେବଳ ଦିଟା ଖାଇବା ପାଇଁ ଏବଂ କେତେବେଳେ ଟିକିଏ ବୁଲି ଆସିବା ଛଡ଼ା ଏଣିକି ତେଣିକି ଗଲା ନାହିଁ । ତାକୁ ତା ଜାଗାରୁ ଘୁଞ୍ଚେଇବା ବି ଅସମ୍ଭବ ହୋଇ ପଡ଼ିଲା । ସେଭଳି ଅବସ୍ଥାରେ ଘୁଞ୍ଚେଇବାଟା ବି ବଡ଼ ନିର୍ଦ୍ଦୟ କଥା । ଫଳରେ, ଦରକାର ପଡ଼ିଲେ ତାକୁ ଡେଇଁକି ଯିବା ଆସିବା କରିବାକୁ ହେଉଥିଲା । ଯିବା ଆସିବା କଲା ବେଳେ କେହି କେହି ତା'ର ଲାଙ୍ଗୁଡ଼କୁ ମାଡ଼ି ପକାଉଥିଲେ ବା ତା ଥାବା ଉପରେ ଚଢ଼ି ଯାଉଥିଲେ । କେହି କେହି ଅଧୈର୍ଯ୍ୟ ଭାବେ ଗୋଡ଼ରେ ତାକୁ ଆଡ଼େଇ ଦେଉଥିଲେ । ସେ କାହାକୁ କିଛି ନକରି ରାଗରେ ଚିତ୍କାର କରି ଉଠୁଥିଲା, ଟିକିଏ ଘୁଞ୍ଚି ଯାଇ ଆସ୍ତେ କରି ପୁଣି ଫେରି ଆସୁଥିଲା ତା'ର ସେଇ ଜାଗାଟିକୁ । ବିଲେଇମାନେ ପୁଣି ଏଭଳି ବ୍ୟବହାର କରି ପାରନ୍ତି ବୋଲି ଆଗରୁ କେବେ ମୋ କାନ ଶୁଣି ନଥିଲା କି ମୁଁ କେବେ ପଢ଼ିବି ନଥିଲି । ତୁ ଜାଣିଥିବୁ, ଡାକ୍ତରମାନେ ସାଧାରଣତଃ କୌଣସି କିଛି ପାଇଁ ଆଶ୍ଚର୍ଯ୍ୟ ହୁଅନ୍ତି ନାହିଁ । କିନ୍ତୁ ଡାକ୍ତର ଶେଭ୍‌ଚେଙ୍କୋ ଥରେ ମୁରୁକି କି ହସି କହିଥିଲେ :

"ଆପଣଙ୍କ ବିଲେଇଟି, ସତରେ, ବଡ଼ ଆଶ୍ଚର୍ଯ୍ୟ ରକମର । ସିଏ ଯେମିତି ସତରେ ଏଠି ପହରା ଦେଉଛି ! ଏମିତି ସାଧାରଣତଃ ଦେଖା ଯାଏ ନା..."

"କିନ୍ତୁ, ନିକା, ମୁଁ କେବେ ଏହାକୁ ଆଶ୍ଚର୍ଯ୍ୟଜନକ ବା ଅସାଧାରଣ ବୋଲି ଭାବେ ନା । ଏବେ ବି ହୃଦୟ ମୋର ୟୁଶ୍କାର ସେ ସ୍ନେହ ଆଉ ତା'ର ସ୍ମୃତିରେ ବିଗଳିତ ହୋଇ ପଡ଼େ...

"ଆଉ ଏକ ଘଟଣା ଘଟିଲା, ଯେଉଁଥିରେ ଆଶ୍ଚର୍ଯ୍ୟ ହେବାର କଥା । କୋଲ୍ୟା ତା'ର ରୋଗରୁ ଉଠିଲା ଏବଂ ସ୍ୱାସ୍ଥ୍ୟ ତାର ଟିକେ ଭଲ ଆଡ଼କୁ ଆସିଲା । ତା'ର ରୁଚି ମୁତାବକ ତାକୁ ଖାଇବା ପାଇଁ କୁହାଗଲା ଏବଂ ସେ ଉଠିକି ବସିଲା ଓ ବିଛଣାରେ ଖେଳିଲା । ୟୁଶ୍କା ସେତେବେଳେ ଯାଇ ତା ଜାଗା ଛାଡ଼ିକି ଗଲା । କୌଣସି ଲଜ୍ଜା ନକରି ସେ ଶୋଇ ରହିଲା ଖାଲି ମୋ ବିଛଣାରେ – ଏତେ ଦିନ ଧରି



ନଶୋଇ କି ସେ ଯେଉଁ ପହରା ଦେଉଥିଲା, ସେଟାକୁ ମେଣ୍ଟେଇବା ପାଇଁ ସେ ନିଶ୍ଚୟ ଶୋଉଥିଲା । ଶେଷରେ ସେ ଯେତେବେଳେ କୋଲ୍ୟା ସହିତ ପ୍ରଥମ ଦେଖା କରିବାକୁ ଗଲା, ସେ ଉତ୍ତେଜିତ ମନେ ହେଉନଥିଲା । କୋଲ୍ୟା ତାକୁ ଅତି ଆଦରରେ କୁଣ୍ଡାଇ ପକାଇ ଆଉଁଶି ଦେଲା, ତା ନାଆଁ ଧରି ଆଦରରେ ଡାକିଲା । ୟୁଶ୍‌କା କିନ୍ତୁ ତାର ସେ ଦୁର୍ବଳ ହାତ ମଧ୍ୟରେ ରହୁ ନଥାଏ, ଘୁଡ଼ୁ ଘୁଡ଼ୁ କରି ତଳକୁ ଡେଇଁ ପଡ଼ି ପଳେଇ ଯାଉଥାଏ ।

"ବର୍ତ୍ତମାନ, ନିକା, ତତେ ଏଭଳି କେତେକ କଥା କହିବି, ତୁ ଯାହାକୁ ବିଶ୍ୱାସ କରି ପାରିବୁ ନାହିଁ । ମୁଁ ଯେତେ ଲୋକଙ୍କୁ ସେ କଥା କହିଛି, ସମସ୍ତେ ଅବିଶ୍ୱାସରେ ମୋ ଆଡ଼କୁ ଚାହିଁ ହସିଛନ୍ତି । ସେମାନଙ୍କ ସେ ହସଟା ମୋତେ ଲାଗିଛି ଜୋରଜବରଦସ୍ତିଆ ଏବଂ ଭଦ୍ରତାସୁଲଭ । ଅନେକ ସମୟରେ ମୋର ବନ୍ଧୁମାନେ କହିଛନ୍ତି, 'ତମେ ଲେଖକମାନେ ବଡ଼ କଳ୍ପନାପ୍ରବଣ ! ତମକୁ ଈର୍ଷା କରିବା ଛଡ଼ା ଆଉ କିଛି କରି ହୁଏ ନାହିଁ । ବିଲେଇ ଫୋନ୍‌ରେ କଥା କହେ, କିଏ କେବେ ଶୁଣିଛି ?'

"ସେ କିନ୍ତୁ କଥା କହୁଥିଲା । କିମିତି କହୁଥିଲା, ମୁଁ ତତେ କହୁଛି ରହ !"

"କୋଲ୍ୟା ରୋଗରୁ ଉଠିଲା ବେଳକୁ ଖୁବ୍ ରୋଗା ହୋଇ ଯାଇଥିଲା, ଫିକା ପଡ଼ିଯାଇ କେମିତିକା ଗୋଟେ ରକ୍ତହୀନ ଦିଶୁଥିଲା । ଓଠଟା ଶୁଖିଲା ଦିଶୁଥାଏ, ଆଖି ଯୋଡ଼ିକ ଭିତରକୁ ପଶି ଯାଇଥାଏ ।



ହାତ ପାପୁଲି ଦୁଇଟି ଆଲୁଅରେ ନାଲିଆସିଆ ପଡ଼ିଯାଇ ଶେତା ଦିଶୁଥାଏ । କିନ୍ତୁ ମଣିଷର ଦୟା , କରୁଣା ହେଉଛି ଅନେକ ବଡ଼ , ଏବଂ ତା'ର ଶେଷ ନାହିଁ । କୋଲ୍ୟା ତା'ର ପୂର୍ଣ୍ଣ ସ୍ୱାସ୍ଥ୍ୟ ଲାଭ ପାଇଁ ତା ମାଙ୍କ ସାଙ୍ଗରେ ଗଲା ଦୁଇ ଶହ ମାଇଲ ଦୂରରେ ଥିବା ଏକ ଅପୂର୍ବ ସ୍ୱାସ୍ଥ୍ୟନିବାସକୁ । ପେଟ୍ରଗ୍ରାଦ୍ ସହିତ ସେ ସ୍ୱାସ୍ଥ୍ୟନିବାସଟିର ଥିଲା ଟେଲିଫୋନ୍ ଯୋଗାଯୋଗ । ଏପରିକି ଟିକେ ଚେଷ୍ଟା କଲେ ବି , ସହର ଉପାନ୍ତରେ ଥିବା ଆମ ଘର ସହିତ ଟେଲିଫୋନ୍ ଯୋଗେ କଥାବାର୍ତ୍ତା କରି ହୁଏ । ଆମ ଘରେ ଫୋନଟିଏ ମଧ୍ୟ ଥାଏ । କୋଲ୍ୟାର ମା ଶୀଘ୍ର ସ୍ୱାସ୍ଥ୍ୟନିବାସରୁ ଆମ ଘରକୁ ଫୋନ୍ କଲେ । ମୁଁ ଅତି ଆନନ୍ଦିତ ହୋଇ ପଡ଼ିଲେ ମଧ୍ୟ , ଫୋନ୍‌ରେ ତାଙ୍କର ପରିଚିତ ସ୍ୱର ଶୁଣି ଆଶ୍ଚର୍ଯ୍ୟ ହୋଇ ନଥିଲି । ପ୍ରଥମେ ମୁଁ ଶୁଣିବାକୁ ପାଇଲି ଜଣେ ମହିଳାଙ୍କର କ୍ଲାନ୍ତ କଣ୍ଠ ଏବଂ ତାପରେ ଏକ ଶିଶୁର ଆଦରଭରା ଆନନ୍ଦଭରା ସ୍ୱର ।

"ୟୁଶ୍‌କାର ବଡ଼ ଏବଂ ଛୋଟ , ଦୁଇଟି ଯାକ ବନ୍ଧୁ ଛାଡ଼ି କି ଚାଲିଗଲା ପରେ ସେ ଭୟଙ୍କର ଅସ୍ତବ୍ୟସ୍ତ , ବିଚଳିତ ହୋଇ ପଡ଼ିଲା । ଏ ଘରୁ ସେ ଘରକୁ , ସେ ଘରୁ ଆର ଘରକୁ – ସେ ଖାଲି ଖୋଜି ବୁଲୁଥାଏ , ନାକରେ ପ୍ରତିଟି ଘର କୋଣକୁ ଶୁଙ୍ଘୁଥାଏ । ଶୁଙ୍ଘି ଦେଇ ସେ କହୁଥାଏ ମିଆଉଁ । ଆମ ପାଖରେ ଦୀର୍ଘ ଦିନ ଧରି ରହିବା ମଧ୍ୟରେ ସେ ପ୍ରଥମ କରି ଏହି ଶବ୍ଦଟି ଉଚ୍ଚାରଣ କଲା ସେଥର।

ବିଲେଇ ଭାଷାରେ ଏହି ଶବ୍ଦଟିର ଅର୍ଥ କ'ଣ ମୁଁ ଜାଣେ ନା, କିନ୍ତୁ ମଣିଷ ଭାଷାରେ ଏହାର ଅର୍ଥ ହେଉଛି : 'କ'ଣ ହୋଇଛି ? ସେମାନେ ସବୁ କାହାନ୍ତି ? କାହିଁକି ସେମାନେ କୁଆଡ଼େ ଚାଲି ଗଲେ ?'

"ତାପରେ ସେ ମୋତେ ଚାହୁଁଥିଲା କଟମଟ କରି । ମୁଁ ତା'ର ସେହି ହଳଦିମିଶା ସବୁଜ ଆଖି ଦୁଇଟିରେ ଦେଖିବାକୁ ପାଉଥିଲି ବିସ୍ମୟ ଏବଂ ଉତ୍ତର ଆଶା କରୁଥିବା କେତେକ ପ୍ରଶ୍ନ ।

"ପୁଣି ସେ ଶୋଇବାକୁ ଆରମ୍ଭ କରି ଦେଲା ମେଜିଆ ଉପରେ, ଏଥର କିନ୍ତୁ ମୋ ଟେବୁଲ ଆଉ ବିଛଣା ମଧ୍ୟରେ ଥିବା ଜାଗା ଟିକକରେ । ନରମ ଆରାମ ଚେୟାର ବା ସୋଫା ଉପରେ ତାକୁ ଶୁଆଇ ଦେବାକୁ କେତେ ଥର ମୁଁ ଚେଷ୍ଟା କଲି, କିନ୍ତୁ କିଛି ଫଳ ହେଲା ନାହିଁ । କିଛି ସମୟ ସେ ସେଠାରେ ବସି ପଡ଼ି ତାପରେ ଆସ୍ତେକିନା ତଳକୁ ଡେଇଁ ପଡ଼ୁଥିଲା ଏବଂ ଚାଲି ଯାଉଥିଲା ତା'ର ସେଇ ଅନ୍ଧାରୁଆ, କଠିନ, ଥଣ୍ଡା କୋଣ ଜାଗାଟିକୁ ।

"ଟେଲିଫୋନ୍‌ଟି ଆମର ରହିଥାଏ ଏକ ଛୋଟ ଗୋଲ ଟେବୁଲ ଉପରେ । ପାଖକୁ ତା'ର ଲାଗି ପଡ଼ିଥିଲା ପଛ ପାଖ ନଥିବା ଏକ ବେତବୁଣା ଚେୟାର । ମୋର ଠିକ୍ ଖିଆଲ ନାହିଁ, ସ୍ୱାସ୍ଥ୍ୟନିବାସ ସହିତ ମୁଁ ଫୋନ୍‌ରେ କେଉଁ ଥର କଥାବାର୍ତ୍ତା କଲା ବେଳେ ୟୁଶ୍‌କା ମୋ ପାଦ ପାଖରେ ବସିଥିଲା । ତେବେ ଏତିକି ମୋର ମନେ ପଡ଼େ, ଘଟଣାଟି ଘଟିଥିଲା ସେମାନେ ପ୍ରଥମେ ଥରେ ଦି ଥର ଫୋନ୍ କଲା ପରେ । ଫୋନ୍‌ଟି ବାଜିବା କ୍ଷଣି, ସେ ଧାଇଁ ଆସୁଥିଲା ଫୋନ୍ ପାଖକୁ ।

"ମୁଁ କିନ୍ତୁ ପ୍ରଥମେ ପ୍ରଥମେ ୟୁଶ୍‌କାର ମନ କଥାଟା ବୁଝି ପାରି ନଥିଲି । ଥରେ ଫୋନ୍‌ରେ କୋଲ୍ୟା ସହିତ କଥା କହିଲା ବେଳେ ସେ ମେଜିଆରୁ ମୋ କାନ୍ଧ ଉପରକୁ ଡେଇଁ ପଡ଼ିଲା । ତାପରେ କ୍ରମଶଃ ଫୋନ୍ ଆଡ଼କୁ ଘୁଞ୍ଚି ଆସି ଗାଲରେ ମୋର କାନ ଦିଓଟିକୁ ଛିଡ଼ା କରାଇ କି ଗୁଞ୍ଜି ଦେଲା ମୁଣ୍ଡଟିକୁ ।

"ମୁଁ ନିଜକୁ ନିଜେ କହି ଉଠିଲି : 'ବିଲେଇର କାନ ପରା ଖୁବ୍ ପତଳା । ଯେ କୌଣସି କୁକୁରଠାରୁ ଏବଂ ମଣିଷଠାରୁ ଅନେକ ଭଲ ଭାବେ ସେ ଶୁଣି ପାରେ ।' ଆମେ କେବେକେବେ ଅନେକ ରାତିରେ ବନ୍ଧୁମାନଙ୍କ ସହିତ ସାକ୍ଷାତ କରି ଫେରୁ । ୟୁଶ୍‌କା କିନ୍ତୁ ଦୂରରୁ ଠିକ୍ ଆମର ପାଦ ଶବ୍ଦକୁ ଚିହ୍ନି ନେଉଥିଲା । ତା ଅର୍ଥ, ସେ ଆମ ପରିବାରର ସମସ୍ତଙ୍କୁ ଚିହ୍ନିଥିଲା ଭଲ କରି ।

"ଥରେ ଗିଓର୍ଗି ନାମକ ଚାରି ବର୍ଷର ଏକ କୌତୁକିଆ ପିଲା ଆସିଥିଲା ଆମ ଘରକୁ । ସେ କିନ୍ତୁ ୟୁଶ୍‌କାକୁ ବଡ଼ ଅସ୍ତବ୍ୟସ୍ତ କରି ପକାଇଲା – ତା କାନ ଆଉ ଲାଙ୍ଗୁଡ଼କୁ ଟାଣିବା ଠାରୁ ଆରମ୍ଭ କରି ତାକୁ ଟେକିକି ଏଣେ ତେଣେ ଖାଲି ନେଇ ଯାଉଥିଲା । ଏତେ ଜୋରରେ ସେ ତାକୁ ଧରୁଥିଲା ଯେ, ୟୁଶ୍‌କାର ପେଟ୍‌କୁ ଖୁବ୍ କାଟୁଥାଏ । ତାକୁ ଭଲ ଲାଗୁ ନଥାଏ ଏସବୁ, କିନ୍ତୁ କ'ଣ କରିବ, ସେ ତ ବଡ଼ ଭଦ୍ର ବିଲେଇ । ପିଲାଟିକୁ ତେଣୁ ଆମ୍ପୁଡ଼ି ଦେଉ ନଥିଲା । କିନ୍ତୁ ପରେ, ପିଲାଟି ଯେତେବେଳେ ସପ୍ତାହକ ପରେ, ମାସକ ପରେ, ଏପରିକି ଆଉରି ବେଶି ସମୟ ପରେ ଘରକୁ ଆସିଲା, ୟୁଶ୍‌କା ତା ଡାକ ଦୁଆର ମୁହଁରୁ ଶୁଣି ସଙ୍ଗେ ସଙ୍ଗେ ବିକଳରେ ମିଆଉଁ ମିଆଉଁ ହୋଇ ପଳେଇ ଯାଉଥିଲା ଏକ ନିରାପଦ ଜାଗାକୁ । ଗ୍ରୀଷ୍ମକାଳ ହୋଇଥିଲେ, ପାଖରେ ଥିବା ଖୋଲା ଝରକା ଦେଇ ସେ ଡେଇଁ ପଡ଼ୁଥିଲା ବାହାରକୁ ।



ଶୀତକାଳ ହୋଇଥିଲେ, ସୋଫା ତଳେ କିମ୍ବା ସିନ୍ଦୁକ ତଳକୁ ପଶି ଯାଉଥିଲା । ସତରେ, ତା'ର ସ୍ମୃତି ଥିଲା ଖୁବ୍ ପ୍ରଖର ।

"କିନ୍ତୁ ତା ପକ୍ଷରେ ସବୁଠାରୁ ଅସାଧାରଣ କଥା ହେଉଛି, ସେ କେମିତି କୋଲ୍ୟାର ସ୍ୱରକୁ ବାରି ପାରିଲା ଏବଂ ଜାଣିବାକୁ ଚେଷ୍ଟା କଲା, ତା'ର ଅତି ପ୍ରିୟ ବନ୍ଧୁଟି କେଉଁଠି ଯାଇ ଲୁଚିଛି ?"

"ମୋର ଅନୁମାନଟାକୁ ମୁଁ ପରୀକ୍ଷା କରିବାକୁ ଚାହିଁଥିଲି । ସେ ଦିନ ସଂଧ୍ୟାରେ ମୁଁ ଲେଖିଲି ସ୍ୱାସ୍ଥ୍ୟନିବାସକୁ ଏକ ଚିଠି । ଚିଠିରେ ମୁଁ ବିଲେଇଟିର ସମସ୍ତ ଆଚରଣ ସଂପର୍କରେ ପୁଙ୍ଖାନୁପୁଙ୍ଖ ଭାବେ ବର୍ଣ୍ଣନା କରି କୋଲ୍ୟାକୁ ଲେଖିଲି – ସେ ପୁଣି ଯେତେବେଳେ ଆମ ଘରକୁ ଫୋନ୍ କରିବ, ସେତେବେଳେ ସେ ଘରେ ୟୁଶ୍‌କାକୁ ଯେଉଁସବୁ ଆଦରମିଶା ଶବ୍ଦସବୁ କହେ, ସେସବୁକୁ ମନେ ପକାଇ କହିବ । ମୁଁ ଫୋନ୍‌ର ରିସିଭରଟିକୁ ୟୁଶ୍‌କାର କାନ ପାଖକୁ ଲଗେଇ କି ଧରିବି ।

"ଶୀଘ୍ର ଉତ୍ତର ଆସିଗଲା କୋଲ୍ୟା ପାଖରୁ । ୟୁଶ୍‌କାର ତା ପ୍ରତି ଏତେ ଆନୁଗତ୍ୟ ଆଉ ନିଷ୍ଠାର ଖବର ପାଇ ସେ ଖୁବ୍ ଖୁସି ହେଲା ଏବଂ ତା କଥା ମନେ ପକାଇଲା । ତିନି ଦିନ ପରେ ସେମାନେ ଘରକୁ ଫେରିବାର କଥା, କିନ୍ତୁ ଦୁଇ ଦିନ ପରେ ସେ ମୋତେ ଫୋନ୍ କରିବ ବୋଲି ଲେଖିଥିଲା ।

"ସତକୁ ସତ, ତା ପର ଦିନ ସକାଳେ ଟେଲିଫୋନ୍ ଅପେରେଟର ଜଣାଇଲେ ଯେ, ସ୍ୱାସ୍ଥ୍ୟନିବାସରୁ ଫୋନ୍ ଆସିଛି । ୟୁଶ୍‌କା ମୋ ପାଖକୁ ଲାଗି ମେଜିଆ ଉପରେ ଛିଡ଼ା ହୋଇଥାଏ । ମୁଁ ତାକୁ ଟେକି ଆଣି ମୋ କୋଡ଼ରେ ବସାଇ ଦେଲି । ତାପରେ ଫୋନ୍‌ରୁ ଶୁଣାଗଲା କୋଲ୍ୟାର ମଧୁରିଆ

କଣ୍ଠସ୍ୱର । ତା'ର କେତେ ଯେ ଅଭିଜ୍ଞତା , କେତେ ନୂଆ ବନ୍ଧୁ , ସେ ମୋତେ ଶୁଣାଇ ଗଲା । ଘର ବିଷୟରେ କେତେ ପ୍ରଶ୍ନ , ଅନୁରୋଧ ଆଉ ନିର୍ଦ୍ଦେଶ । ତା'ର ସେସବୁ ଅସରା କଥା ମଧ୍ୟରେ ମୋର ଅନୁରୋଧଟି କୌଣସିମତେ ତାକୁ ଜଣାଇ ଦେଲି :

" ବାପା କୋଲ୍ୟା , ମୁଁ ରିସିଭରଟି ୟୁଶ୍‌କାର କାନ ପାଖରେ ଧରୁଛି , ତୁ ତାକୁ ଦୁଇ ଗ୍ଧରିଟି ଭଲ କଥା କହ , ଜଲଦି କହ !

" କିନ୍ତୁ ସେ ଯେ କ'ଣ କହି ଗ୍ଧଲିଥିଲା , ମୁଁ ଧରି ପାରୁ ନଥିଲି । ମୋର ମନେ ପଡ଼ୁଛି , ସେ କ'ଣ ଗୋଟାଏ ଥରକୁ ଥର କହି ହେଉଥାଏ ? ସମ୍ଭବତଃ ସେ କହୁଥାଏ , 'ମୋ ପାଇଁ ତମେ ଗୋଟିଏ ଚଢ଼େଇ ପିଞ୍ଜରା କିଣି ଦେବ କି ନାହିଁ , କୁହ , ସେମାନେ ଯେମିତି ଏଠି ଝରକା ବାହାରେ ଟଙ୍ଗେଇ କି ରଖିଛନ୍ତି ?

" କୋଲ୍ୟା , ସେମିତି ଅଝଟ କର ନା , ତୁ ପରା କେତେ ଭଲ ପିଲା । ତୁ କହିଥିଲୁ ୟୁଶ୍‌କା ସହିତ କଥା କହିବାକୁ ପରା ।

" ମୁଁ କିନ୍ତୁ ଜାଣେ ନା , ବିଲେଇ ସହିତ କେମିତି କଥା କହିବାକୁ ହୁଏ । ମୁଁ କହି ପାରିବି ନାହିଁ । ସବୁ ଭୁଲି ଗଲିଣି ବାପା ।

"ଫୋନ୍‌ରେ କ'ଣ ଗୋଟାଏ କ୍ଲିକ୍ କ୍ଲିକ୍ ଶବ୍ଦ ଶୁଣାଗଲା , ତାପରେ ଆସିଲା ଅପେରେଟରର ରାଗମିଶା କଥା , 'ଫୋନ୍‌ରେ ଏମିତି ଆଜେ ବାଜେ କଥା ଆପଣ କହି ପାରିବେ ନାହିଁ । ରିସିଭର ରଖି ଦିଅନ୍ତୁ । ଅନ୍ୟମାନେ କଥା କହିବାକୁ ଅପେକ୍ଷା କରିଛନ୍ତି ।'

"ତାପରେ କଟ୍‌କିନା ଶବ୍ଦ ହୋଇ ଫୋନ୍‌ଟି ବନ୍ଦ ହୋଇ ଗଲା ।

"ପରୀକ୍ଷାଟା ମୋର ଶେଷ ହେଲା ବିଫଳତାରେ ସେ ଦିନ । କେଡ଼େ ଲଜ୍ଜାର କଥା , କହ ତ ! ମୋର ଜାଣିବାକୁ ଖୁବ୍ ଇଚ୍ଛା ଥିଲା ଯେ , ଆମ ବୁଦ୍ଧିମାନ ବିଲେଇଟି ତା'ର ସେଇ ପରିଚିତ ଆଦରମିଶା କଥାଗୁଡ଼ିକୁ ଶୁଣି ଘୁଡ଼ୁ ଘୁଡ଼ୁ ଶବ୍ଦ କରିବ କି ନାହିଁ ।

"ୟୁଶ୍‌କା ବିଷୟରେ ଏତିକିରୁ ଶେଷ ହେଲା ।

"ଅଳ୍ପ ଦିନ ଆଗେ ବୁଢ଼ୀ ବୟସରେ ମରିଗଲା ୟୁଶ୍‌କା । ଏବେ ଆମର ଭେଲ୍‌ଭେଟ ଭଳି ନରମ ଲୋମଶ ବିଲେଇଟିଏ ଅଛି । ପୁଣି ଥରେ ତା କଥା ତୋତେ କହିବି , ନିକା । ଆଜି ଏତିକିରେ ଥାଉ !"

